ବନ୍ଦେ ପିତରଂ ।



# ଜାତୀୟ ଗୀତ ।

ଶ୍ରୀ ଶ୍ୟାମସୁନ୍ଦର ନନ୍ଦ
କର୍ତ୍ତୃକ ରଚିତ ।

ଶ୍ରୀ ଚନ୍ଦ୍ରଚୂଡ଼ ଦେବ ଉପାଧ୍ୟାୟଙ୍କ କର୍ତ୍ତୃକ
ପ୍ରଜା ବନ୍ଧୁ କାର୍ଯ୍ୟାଳୟରୁ ପ୍ରକାଶିତ ।
ରମ୍ଭା ।

ମୂଲ୍ୟ ଦୁଇ ପଇସା ।

KALLIKOTE ESTATE PRESS.

ଶ୍ରୀ ଶଶି [illegible] ଉପହୃତ



## ଜାତୀୟ ଗୀତ ।

ସଙ୍କୀର୍ଣ୍ଣ ଗଣ୍ଡି    କଥାନ୍ତେ ଜନନି
କାନ୍ଦିଲେ କି ଲାଭ ହେବ ;
ନୈରାଶ୍ୟ ସାଗରେ    ବୁଡ଼ି ରହିଲେ କି -
ଭବେ କେହି ବଡ଼ହେବ ?
ଅଶ୍ରାନ୍ତ ଖଟିଲେ    ମିଳିବ ସହଜେ
ସ୍ୱପ୍ନେ ଦେଖିନାହିଁ ଯାହା ;
ଯତ୍ନକଲେ ହେବ    ଅଜ୍ଞ ଯା କାନ୍ତାର
ଶସ୍ୟକ୍ଷେତ୍ର ହବେ ତାହା ।
ସୁସୁପ୍ତି ଶେଷରେ    ଜୀବ ଜାଗରିତ
ହେବାରୁ ଯତ୍ନ ପୂରଣ ;

ବଳ କାର୍ଯ୍ୟ ବୃଦ୍ଧ    ଶକ୍ତି ବଢ଼ଯାଉ
ତା ଯୋଗୁଁ ତ ବିସ୍ଫୁରଣ ।
ଉଠାଅ ସନ୍ତାନେ    ଢାଳ ଦଅ କାନେ
କର୍ତ୍ତବ୍ୟ ମନ୍ତ୍ର ସକଳ ;
ମାତାର ଆହ୍ୱାନେ    ଉପୁଜିବ ପ୍ରାଣେ
ନବୀନ ଉତ୍ସାହ ବଳ ।
କର୍ମବୀର ଛବି    ପୁଅଙ୍କୁ ଦେଖାଇ
କହିଦିଅ ଗୂଢ଼ କଥା ;
'ଅସାଧ୍ୟ' ନାମକ    ହେୟ ବର୍ଣ୍ଣ ତ୍ରୟ
ଅଳସଙ୍କ ଶାସ୍ତ୍ରେ ଲେଖା ।
ଜଣେ ଯା କରନ୍ତି ,    ଅନ୍ୟ କପାଁ ତାହା
କରି ନପାରିବ କହ ;
ଉଦ୍ଯୋଗୀ ପୁରୁଷ    ଚେଷ୍ଟାରେ ତ ମାଟି
ସ୍ୱର୍ଣ୍ଣ ଚିହ୍ନି ପ୍ରସବୁଛି ।
ନମଣ କେବେହେଁ ,    ଓଡ଼ିଆଙ୍କ ଅସାର
ବଳ କାର୍ଯ୍ୟ ବୁଦ୍ଧିହୀନ ;

ପିତୃ ପିତାମହ   ରକ୍ତ ଧମନୀରେ
ବହୁଛୁ ହେଲେହେଁ କ୍ଷୀଣ ।
ଶତ ଶତ ବର୍ଷ   ମାଟିରେ ପଡ଼ିଲେ
ମାଟି କହୁଅଛି ବହି ;
ଏତେ ସବୁ ହେଲେ   ହୁଦ୍ୱା ତୋ କାଳରେ
ଶୋଭୁଛନ୍ତି କେତେ ରତ୍ନ ।
କାହିଁକି କହୁଛ   ଉତ୍କଳ ଜନନୀ
ଅଟେ ଅତି ଅଭାଗିନୀ ;
ଚିରକାଳ ତାର   ରହିଛି ତ ଖ୍ୟାତି
ଯୋଗ୍ୟ—ପୁତ୍ର ପ୍ରସବିନୀ ।
ମନର ସାଧନ,   ଶରୀର ପାଳନ,
ମହାମନ୍ତ୍ର ହୃଦେ ଧରି
ହୁଅନ୍ତୁ ସମସ୍ତେ   ସଦା ଅଗ୍ରସର
ଏମାନଙ୍କୁ ଅନୁସରି ।
ଉଠ ଉଠ ଭାଇ   ଶୋଇ କାର୍ଯ୍ୟ ନାହିଁ
ପାହିଲାଣି ଅମା ରାତି

ନବୀନ ଉତ୍ସାହେ      କାର୍ଯ୍ୟେ ଲାଗିଯାଅ
କାର୍ଯ୍ୟ—ରତ ସବୁ ଜାତି
ନାହିଁତ ବିଳମ୍ବ      ଉଠିବାକୁ ରବି
ଓଡ଼ିଶା ଗୃହ—ଗୃହାଙ୍ଗେ
ପ୍ରବୃତ୍ତହୁଁ କାର୍ଯ୍ୟ      କରିବାର କାଳ
ନକଟାଅ ଅବକାଶେ ।
ଏକାମ୍ର କାନନେ      ମହୋଦଧିତଟରେ
ଚନ୍ଦ୍ରଭାଗାତୀର୍ଥେ ଗାଜ
ଗନ୍ଧବୃଷ୍ଟିପାତ      ହେଉଛି, ଅଚିରେ
ହସିବେ ତୋ କୀର୍ତ୍ତିରାଜ ।
ସାନ ବଡ଼ ଯେତେ      ଚେଷ୍ଟିତ ସରବେ
କରିବାକୁ ମାତୃସେବା
ତୋର ଆଶୀର୍ବାଦ      ପାଇଲେ ଜନନୀ
ଦଶଜଣେ ଜଣେହେବା ।





ଅଳ୍ପ ଦିନେ ମାତଃ ହେବ ପ୍ରସବିନୀ

ଗଙ୍ଗାଠାରୁ ଗୋଦାବରୀ

ଗାଉଥିଲେ ଯଶ ସତତ ତୋହର

ତୋ ପୁଅ କାହାକୁ ଡରେ ।

ଶୁଣି ତୋର ପୁଏ, କୀର୍ତ୍ତି ଶାନ୍ତିଦେବେ,

ବକ୍ଷ୍ୟତ ଜରୁଆପଣେ;

ପକ୍ଷୀ ଉଡ଼ିଗଲେ ଚମକି ପଡ଼ନ୍ତି

ଲୁଚନ୍ତି କବାଟକଣେ ।

କାହ୍ନୁରେ ଯେ ଥରେ ବନ୍ଧ ଉକ୍ତ ଦେଇ

ଗଢ୍ୟ ଦଣ୍ଡ ବଯାଇଲେ;

ତାଙ୍କ ବଂଶଧରେ ପେଟ ପୋଷିବାକୁ

ଦିଅଁଦାପଣ ଘୁଞ୍ଚିଲେ ।

ତୋର ଶୁକ୍ଳଯଶ, ନିକୁଞ୍ଜେ ନିକୁଞ୍ଜେ ;
ଗାଉଥିଲେ କବି ସଦା ;
ମହାଜନୀ ହୀନା ହେବାରୁ ତୁ ଦୀନା
କବିକୁଳ ହେଲେ ପଦା ।
ମାଧବ, ଶ୍ରୀଧର, ଉପେନ୍ଦ୍ର, ଶାରଳା,
କବିସୂର୍ଯ୍ୟ ଜନ୍ମସ୍ଥାନ ;
ଦାସ୍ୟରେ ହୋଇଲୁ 'ଶାଗୁ ବୋହୁକଳ,'
'ବୈଦ୍ୟନାଟ,' ପ୍ରିୟସ୍ଥାନ ।
ଯେଉଁ ଗ୍ରନ୍ଥେ ଗ୍ରନ୍ଥେ ତୋ କୀର୍ତ୍ତି କଳାପ
ଜାଗୁଥିଲା ପକ୍ଷି ଘିଙ୍ଗେ ;
ଅଜ ଦଶା ଦେଖି କଏ ବା କହିବ
ଥିଲୁ ଭାଗ୍ୟବତୀ ଆଗେ ।
ଶୈଳେ, ଶୈଳେ, ଅଉ ନ ଶୋଭେ ଦେଉଳ;
ସଦାବର୍ତ୍ତ ଜଳାଶୟେ ,
ନ ଶୋଭଇ ଦେଶ ; ଧର୍ମ୍ମ ଏ ବ୍ୟସନେ
ସଦାରତ ନାଶୁଶୟେ ।

ଥିଲା ଏହି ସ୍ଥଳ, ପଣ୍ଡିତ ବହୁଳ
ନିର୍ଲୋଭ ଉଦାରମନା,
ରାଜଦ୍ୱାରେ ପୂଜା ପାଉଥିଲେ ସଦା,
ନ ଥିଲା ଦୁଆର ମନା ।
ଶସ୍ତ୍ର, ଶାସ୍ତ୍ର ଚର୍ଚ୍ଚା ବଦଳେ ହୋଇଲା
ପରଗ୍ଲାନି, ପରହାନି,
ଘୃଣୋଚିତ କାର୍ଯ୍ୟ; ପଣ୍ଡିତ ବଦଳେ
ମୂର୍ଖ ରାଜଦ୍ୱାରେ ମାନୀ ।
ଯହିଁ ଐର କୀର୍ତ୍ତି, ଉପଦେଶାବଳୀ,
ଶୈଳେ, ଶୈଳେ, ରାଜୁଥିଲା
ଅହିଂସା ବଦଳେ ଭାଇ ଭାଇ କଳି
ତହିଁ ପୁଣି ସାର ହେଲା ।
ସଯତ୍ନ ସଞ୍ଚିତ ଶାସ୍ତ୍ରରତ୍ନ ଯାଙ୍କ
କୀଟଙ୍କ ପେଟକୁ ଗଲା,
ପଣ୍ଡିତଙ୍କ ପୁଅ ଉଦର ଜ୍ୱାଳାରେ
ଭିକ୍ଷା ମାଗି ମାଗି ମଲା ।

ବୁଡ଼ିଅଛି ପୋତ, ନିର୍ଦ୍ଦୟ ସାଗରେ
ପତାକା ଉଡ଼ାଉଥିଲା
ଯାହା ସେ ବୋଇତ ନାମ ହେଲା ଲୁପ୍ତ
ଓଡ଼ିଆ ଭୋଳରେ ମଲା ।

ଓଡ଼ିଶାର ପଣ୍ୟ, ଦେଶ ବିଦେଶରେ
ନପାଏ ଆଉ ଆଦର
ବିଦେଶର ପଣ୍ୟ ଲଦିହେଲେ ଏଣିକି
ନଚଳଇ ଦଣ୍ଡେ ଘର ।

ମୋଟ ଛଦ କାଠ ପାନିଘା କୁଣ୍ଡେଇ
ପିଲାଙ୍କଠୁ ଦେଖିଲେ,
କିଏ ବା କହିବ ବାପ ବଡ଼ବାପେ
ଶିଳ୍ପୀ ପଣେ ବଡ଼ଥିଲେ ।

ଶିଳ୍ପୀପୂର୍ବଜନେ, ଏବା ମୂକାନନେ
ନତ ନତ ହୋଇ ଠୁଳ,
ପ୍ରିୟ କାରିଗର ଦୁର୍ଦ୍ଦଶା ଦର୍ଶନେ
ହେଉଛନ୍ତି ଶୋକାକୁଳ ।

କେ କହେ କାହାନ୍ତି ଇଷ୍ଟ ବ୍ୟୋମକେଶ
ରମ୍ୟ ଦେବାଳୟ ମୂର୍ତ୍ତି;
କେ କହେ ଦେଶ ମୋ ଜଳାଶୟ ଦଶା
ପଙ୍କେ ହୋଇଅଛି ପୂର୍ତ୍ତି ।
ନୀଳାଚଳ ଦଶା ଦେଖି ମହୋଦଧି
ମୁଣ୍ଡକୋଡୁଅଛି ସଦା;
କାହ୍ନକ ହ କହେ କପାପୁଁ ଶ୍ରୀକ୍ଷେତ୍ରୁ
ପ୍ରକୃତ ମନୁଷ୍ୟ ପଦ୍ମା ।
ଧନ ମନ ଦେଇ ଯେଉଁ ଶ୍ରୀମନ୍ଦର
ଓଡ଼ିଆଏ ରଚିଥିଲେ;
ତାହାଙ୍କ ସନ୍ତତ ସେହି ଦେଉଳରେ
ଚୂନ ଲେପି ନପାରିଲେ ।
ଦୂର ଦେଶୁଁ ଲୁହା ପଥର,ଅଣାଇଁ
ବିଚିତ୍ର ଦେଉଳ ରଚି
ଓଡ଼ିଆ ପ୍ରତିଭା ସର୍ବ ଜଗତର
ବିସ୍ମୟ ଜନ୍ମାଇଅଛି ।

ସେହି ଓଡ଼ିଆଙ୍କ ଅର୍କକ୍ଷେତ୍ର ଦଶା
ଝୁରି ଝୁରି କୋମଳାଙ୍ଗୀ-
ଚନ୍ଦ୍ରଭାଗା ଦେବୀ ଅଳପ ଦିନରେ
ହୋଇଗଲେ କୃଶଅଙ୍ଗୀ ।
ସୁଦୃଢ଼ ସୁନ୍ଦର ଅଷ୍ଟାଦଶ ନଳା,
ମର୍କଟ-କେଶରୀ ସେତୁ
ଶାନ୍ତି ବିସ୍ତାରଇ ଯେହ୍ନେ ପୂର୍ବତନ
ଉତ୍କଳ-ଗୌରବ-କେତୁ ।
ସେହି ଓଡ଼ିଆଙ୍କ ଦୁରଭାଗ୍ୟ ପୁଏ
ହୋଇ ଗଲେ ଏତେ ହୀନ;
ଅନ୍ତର ନିର୍ମିତ ଅଟ୍ଟାଳିକା ସେଉଁ
ପାଣିଙ୍କରେ ପରଦିନ ।
ଭକ୍ତ ହରିଦାସ, ମହମ୍ମ ଗାୟକ,
ଢଳାଲେ ଅମୃତ କାନେ;
ଶାସ୍ତ୍ର ଚର୍ଚ୍ଚା ସ୍ଥଳେ 'ମୁକ୍ତି ମଣ୍ଡପ'ରେ
ପୂର୍ତ୍ତି 'ହଅ' 'ହଅ' ଶାନେ ।

ପୁଅଧନ ବିନା          ମାଆଙ୍କର ଟେକ
ପୁଅଠାରୁ ମାତୃ ସୁଖ;
ଛିନ୍ନଭିନ୍ନ ହୋଇ          ପଡ଼ନ୍ତୁ ଗୌହଗେ
କପଟ ହରବ୍ ଦୁଃଖ ।
ସହୋଦର ଭାଇ          ବିଭିନ୍ନ ହୋଇଲେ
ନହୁଏ କାହାର ମାତ୍ରା;
ଏଦଶା ମାଆଙ୍କେ          ତୋହର କପାଳେ
ଲେଖିଥିଲା କ୍ରୂରଥାତା ।
ରଥ ଚକ୍ରପରି          ଭାଗ୍ୟ ଚକ୍ରଘୂରେ
ଦୂନ୍ଦେ ଭବେ ଜଳି ଚର;
ନୁଅନା ଅଧୀର          ଦିନେ ହେବଲେ ତୋର
ଶୁଖିବ ଏ ଦୁଃଖ ନୀର ।
ଶୁଣିଲା ଭାଇଏ          ହୋଇ ଏକ ମେଳ
କରୁଛନ୍ତି ପରାମର୍ଶ,
ନାଶିବେ ତୋ ଦୁଃଖ          ବଢ଼ାଇବେ ଟେକ
କାହିଁକି ଆଉ ବିମର୍ଷ ?

ଜୀବନ ସର୍ବସ୍ୱ    ନଥିଲେ ଉତ୍ତମ
ଥିଲେ କାର୍ଯ୍ୟ ପ୍ରବୃ ଜାତ;
ଭକ୍ତ ବାସନା    ଈଶ୍ୱର ଆଶୀର୍ବାଦ
ପାଇବ ଏଦୁଃଖ ଗଡ଼ ।





ନୂଆ ବହିଟି ଉଚ୍ଚ ନିମ୍ନ ଶ୍ରେଣୀରେ ପାଠ୍ୟପୁସ୍ତକରୂପେ ଚଳିବ ।

# THE
## Cradle of Infant Songs.
With Illustrations.

BY

*Chandra Sekhar Nanda*
*Sub-Inspector of Schools, Cuttack.*



ଶ୍ରୀ ଶ୍ରୀଯୁକ୍ତ ପଞ୍ଚମ ଜର୍ଜ୍ଜଙ୍କ ଉପଢୌକନ

# ନୂଆ ଶିଶୁଗୀତ ।

ପ୍ରଣେତା—ଶ୍ରୀ ଚନ୍ଦ୍ରଶେଖର ନନ୍ଦ ।

ବିଜୟଶ ଲାଭ ପ୍ର ଜନକ ମହାଶୟଙ୍କ [redacted] ଦ୍ୱାରା
ପ୍ରଥମବାର ମୁଦ୍ରିତ ।
ମୂଲ୍ୟ ୦ ୵୶ ପାଇ ।

ଶ୍ରୀ ଶଶି ଭୂଷଣ ରାୟ କର୍ତ୍ତୃକ ଉପହୃତ

# ନୂଆ ଶିଶୁଗୀତ ।

## ଶିଶୁ ଶ୍ରେଣୀ ନିମିତ୍ତ

ଉପହାର ।

ଭଲ ପିଲା ଯିଏ ଅଛ ବୁଦ୍ଧିଆ
ଅଞ୍ଜଳି ହସ୍ତରେ ହୋଇ ସେ ଠିଆ,
ଶିଶୁଗୀତ ନେଇ ସେ ଉପହାର
ଗୁରୁଙ୍କୁ ଯାଇ କରଇ ଜୁହାର ।

ଜଣେ ଛାତ୍ର ଅଞ୍ଜଳି ହସ୍ତରେ ଠିଆ ହେବ ଓ ଅନ୍ୟ ଛାତ୍ରଟି ତାହା ହସ୍ତରେ ଖଣ୍ଡିଏ ଏହି "ଶିଶୁଗୀତ" ପୁସ୍ତକ ଦେବ ।



## ରାଜା-ରାଣୀ ।

( ଜୟଗୀତ )

ଜୟ, ଜୟ, ଜୟ, ଭାରତେଶ୍ୱର,
ମହିମମଣ୍ଡିତ ସେ ନୃପକୁଳବର । ୧ ।
ଭାରତଲକ୍ଷ୍ମୀ, ମା' ଦୟାବତୀ,
ଅତି ଗୁଣବତୀ, ପତ୍ନୀ ସତୀ । ୨ ।

ପୂରନ୍ତୁ ସାମାଜ୍ୟ ଗୌରବଧନେ,
ସୁଖୀ ହୋଇନ୍ତୁ ଯା ସୁଖ—ଶାସନେ । ୩ ।
ଦୀର୍ଘାୟୁ, ସୁଯଶ ଲଭନ୍ତୁ ସେହୁ,
ବନ୍ଧୁଙ୍କ ଚରଣେ ପ୍ରାର୍ଥନା ଏହୁ । ୪ ।

ହାତ ଯୋଡ଼ି ଅଶ୍ରୁ ମାଡ଼ିବସି ଉର୍ଦ୍ଧ୍ୱକୁ ଚାହିଁ ଭକ୍ତିଭାବରେ ବୋଲିବେ । ସମ୍ମୁଖରେ ରାଜା ରାଣୀଙ୍କ ଛବି ରହିଥିବେ ।



## ସ୍ୱରବର୍ଣ୍ଣ ଗୀତ ।



ଉମା କହେ “ମା”, “ମା”
“ଅ” ଗଲେ ପଡ଼େ “ଆ” । ୧ ।
ହ୍ରସ୍ୱ “ଇ”, ଦୀର୍ଘ “ଈ”,
ଚଢ଼ି ହସ “ହି”, “ହୀ” । ୨ ।
ହ୍ରସ୍ୱ “ଉ”, ଦୀର୍ଘ “ଊ”
ସାପ ହୁଏ “ହୁ”, “ସୂ” । ୩ ।
ହ୍ରସ୍ୱ “ଋ”, ଦୀର୍ଘ “ୠ”,
କେଦଣ୍ଡ ବାଜେ “ଌ”, “ୡ” । ୪ ।
“ଏ” ଗଲେ ପଡ଼େ “ଐ”
ଘଣ୍ଟି ନାଚେ “ଠେ”, “ଠୈ” । ୫ ।
“ଓ” ଅଗେ ପଛେ “ଔ”,
ଶିଶୁ ଡାକେ “ହୋ”, “ହୌ” । ୬ ।



## ବ୍ୟଞ୍ଜନବର୍ଣ୍ଣ ଗୀତ



କ, ଖ, ଗ, ଘ, ଙ, ଘରୁ ଗଛ ମୂଳେ ବସିଛି ବେଙ୍ଗ । ୧ ।
ଚ, ଛ, ଜ, ଝ, ଞ, ବେଙ୍ଗ ଚୋବାଉଛି ଞ, ଞ । ୨ ।

ଟ, ଠ, ଡ, ଢ, ଣ — ଘରେ ଦେଖୁଛ ଖୁଣ୍ଟା କୋଣ । ୩ ।
ତ, ଥ, ଦ, ଧ, ନ, — ଭୁଜା ଖାଇବାକୁ ହେଉଛି ମନ । ୪ ।
ପ, ଫ, ବ, ଭ, ମ, — ପିଅ ବାବା ଦୁଧ ଥାଉ ଗରମ । ୫ ।
ଯ, ର, ଲ, ବ, — ପାଠ ପଢ଼ ଧନ ହାତୀ ଚଢ଼ିବ । ୬ ।
ଶ, ଷ, ସ, ହ, — କଅଣ ଖାଇବ ଚମ୍ପଲ କହ । ୭ ।
ଂ, ଃ, ँ, । — ଆକାଶେ ଦେଖ ତାରା ବନ୍ଦୁ, ବନ୍ଦୁ ।୮।

ଛାତ୍ରମାନେ ଏହି ଗୀତ ଆବୃତ୍ତି କଲାବେଳେ ଆଗରୁ ପ୍ରସ୍ତୁତଥିବା ମାଟି ବେଙ୍ଗ ଓ କାଗଜର ସାରୁ ଗଛ ଆଦିଙ୍କୁ ହାତ ଦେଖାଇବେ । "ବେଙ୍ଗ ବୋବାଇବା" "ଭୁଜା ଖାଇବା", "ଦୁଧ ପିଇବା", "ହାତୀ ଚଢ଼ିବା", "ଆକାଶରେ ତାରା ଦେଖାଇବା" ଅଭିନୟ କରିବେ ।

---



## ଭାଇ ଭଉଣୀ ।



ଏକ ମା ପେଟରୁ ଜନମିଥାଉଁ,
ସେ ମୋର ଭଉଣୀ, ମୁଁ ତାର ଭାଇ । ୧ ।
ସେ ପୁଣି ମା ଠାରୁ ଖୀର ଖାଇଛି,
ମୋତେ ଖୀର ଦେଇ ସେ ବଢ଼ାଇଛି । ୨ ।

ସେ ମୋଠୁଁ ବଡ଼, ମୁଁ ତା ଠାରୁ ସାନ,
ବାପ ମାଆଙ୍କୁ ତ ଏକା ସମାନ । ୩ ।
ଖାଇବା ଦରବେ ନ କରୁଁ ଅଳି,
ମୋ ଶରଧା ଛାଡ଼ି ନ ଯିବ ଟଳି । ୪ ।
ଦୁହେଁଯାକ ଦିଶୁଁ ଯେ ଏକା ଭଳି,
ବାପ ମାଆଠାରେ ନ କରୁଁ ଅଳି । ୫ ।

ପ୍ରଥମ ଧାଡ଼ି ବୋଲିବା ସଙ୍ଗେ ଭାଇ ଭଉଣୀର ବା ବାଳକ ବାଳିକାର ହାତ ଧରି ନେଇ ସ୍ନେହରେ ପାଖରେ ଠିଆ କରିବ ଓ ଭାଇ ଏକା ଅଭିନୟ କରିବ । ଭଉଣୀ ନୀରବରେ ଥାଇ ଶେଷ ଦୁଇ ଧାଡ଼ି ଭାଇ ସହିତରେ ଏକାବେଳକେ ବୋଲିବ ।



## ପିତା ମାତା ।



ପିତା ଅଟନ୍ତି ହିତକାରୀ,
ମାତା ଦେବୀଙ୍କ କଷ୍ଟ ଭାରି । ୧ ।
ଦଶ ମାସ ଗର୍ଭରେ ଧରି,
ଶିଶୁରୂପେ ଜନମ କରି । ୨ ।
ସ୍ତନ୍ୟ ଦେଇଣ ବଢ଼ାଇଲେ,
ପିତା ଯେ ପାଠ ପଢ଼ାଇଲେ । ୩ ।
ଅସୁଖ ଦେଖିଲେ ସେ ଦୁଃଖେ,
ନ ଥାଏ ତାଙ୍କ ମନେ ସୁଖ । ୪ ।
ଶିଶୁପାଇଁ ସେ ପ୍ରାଣପଣେ,
ଚିନ୍ତା କରନ୍ତି ଅନୁଦିନେ । ୫ ।
ପାଳି ପାଳି ସେ କଲେ ଏତେ,
ଧନ୍ୟ ତାହାଙ୍କ ସ୍ନେହ କେତେ । ୬ ।

ଅମ୍ଭେ ବଞ୍ଚିବା ପର୍ଯ୍ୟନ୍ତେ,

ସୁଝିବା ତାହାଙ୍କୁ କେମନ୍ତେ । ୬ ।

ଭକ୍ତି ଭାବରେ ହାତ ଯୋଡ଼ି ଏକ ଦଳ ବାଳକ ବୋଲିବେ ।

---

## ମାମୁଘର ।

ମୋତେ ଆନନ୍ଦ ଲାଗେ ମୋ ମାମୁଘରେ,
ମାମୁଙ୍କ ସ୍ନେହ ଭାର ମୋର ଉପରେ । ୧ ।
ଏ ପାଠ ପଢ଼ୁଛି ମୁଁ ମୋଠାରୁ ଜାଣି,
ନୂଆ ନୂଆ ବହି ସେ ଦିଅନ୍ତି ଆଣି । ୨ ।
ମାଇଁ କୋଳେ ବସେଁ ମୁଁ ଆନନ୍ଦରେ,
ତାଙ୍କ ସ୍ନେହ ଅତୁଳ ଏ ଭୁବନରେ । ୩ ।
ଖେଳିବା ଦରବ ସେ ମୋ ପାଇଁ ଆଣି,
ଗେହ୍ଲା କରିଣ ମୋତେ ବୋଲନ୍ତି ବାଣୀ । ୪ ।
ମୋର ପିଠିରୁ ମାଇଁ ଧୀରେ ଆଉଁସି,
ଧୂଳି ମାଟି ଝାଡ଼ନ୍ତି ହୋଇଣି ଖୁସି । ୫ ।
କେତେ ସୁଖ ମୋହର ମାମୁଙ୍କ ଘରେ,
କିଛି ନାହିଁ ତା ପରି ଏ ଭୁବନରେ । ୬ ।
ମୋତେ ଆନନ୍ଦ ଲାଗେ ମୋ ମାଇଁ ଘରେ,
ମାଇଁଙ୍କ ସ୍ନେହ ଭାର ମୋର ଉପରେ । ୭ ।

ଜଣେ ବାଳକ ଆବୃତ୍ତି କରିବ । "ନୂଆ ବହି ଧରିବା" "ଖେଳିବା ଦ୍ରବ୍ୟ ଆଣିବା" "ପିଠି ଆଉଁସିବା" "ଧୂଳି ମାଟି ଝାଡ଼ିବାର" ଅଭିନୟ କରିବେ





## ଜହ୍ନମାମୁ ।

ଅରେ ଜହ୍ନମାମୁ ଶରଦ ଶଶୀ,
ମୋ ପୁଅ ହାତରେ ପଡ଼ବୁ ଖସି । ୧ ।
ଆକାଶୁଁ ଓହ୍ଲାଇ ରଥ ଚଳରେ,
ଖେଳ୍ ମୋ ପୁଅ ତୋହ ସଙ୍ଗତରେ । ୨ ।
ଖାଇବାକୁ ସର ଲବଣୀ ଦେଇ,
ଦେଉଥିବ ଅମୃତପାଣି ପେଇ । ୩
ଶୀତଳ ପଟିରେ ଶୁଆଇ ଥିବ,
ସୁନା ଖଟୁଲି ତୋପାଇଁ ଅଣିବ । ୪ ।
ତୁହେଁ ଯାଇ ମିଶି ଖେଳିବ ଦୋଳି,
ମୁହଁରେ ଚନ୍ଦନ ଦେବରେ ବୋଳି । ୫ ।
ଜହ୍ନମାମୁଠାରୁ ମୋ ପୁଅ ଗୋରା,
ସଂସାର ମଧ୍ୟରେ ଫଟିବ ତୋରା । ୬ ।

ବାଳକା ଓ ପ୍ରଥମ ବର୍ଷୀୟ ଶିଶୁ ଏହି ଗୀତଟି ଆବୃତ୍ତି କରିବେ । "ଜହ୍ନମାମୁଙ୍କୁ" ଦେଖାଇବାପାଇଁ "ଆକାଶକୁ ହାତ ଦେଖାଇବା", "ହାତରେ ଖସିବା", "ଆକାଶରୁ ଓହ୍ଲାଇବା", "ସରଲବଣି ଖାଇବାକୁ ଦେବା", "ପିଇବା", "ଶୋଇବା", "ଦୋଳି ଖେଳିବା", "ଚନ୍ଦନ ବୋଳିବା" ପ୍ରଭୃତିର ଅଭିନୟ କଲେ ସୁନ୍ଦର ହେବ

## ଆସ, ଆସ ଭାଇ ଖେଳିବା ବସି ।

---

ଆସ, ଆସ, ଭାଇ, ଖେଳିବା ବସି,
ମୋ ନାମ କୁମୁଦ, ତୋ ନାମ ଶଶୀ । ୧ ।

ମାତାଙ୍କୁ କହୁଣ ହେବା ସଙ୍ଗାତ,
ସଙ୍ଗ ହୋଇ ଦୁହେଁ ଖାଇବା ଭାତ । ୨ ।

ଆସ, ଆସ, ଭାଇ, ଖେଳିବା ବସି,
ଯଦୁମଣି ମୋତେ ମାଇଲା ହସି । ୩ ।

ଆଉ ତା ସଙ୍ଗରେ ବୁଲିବ ନାହିଁ,
ମିଛୁଆ ପିଲା ସେ ନ ଦେଖେଁ କାହିଁ । ୪ ।

ଆସ, ଆସ, ଭାଇ ଖେଳିବା ବସି,
ଯଦୁକୁ ପରତେ ନ ଦିବା ଶଶୀ । ୫ ।

ତୋହ ଠାରେ ମୋର ଆନନ୍ଦ ଯେତେ,
ଆଉ କାହାଠାରେ ନାହିଁ ତ ସେତେ । ୬ ।

ଜଣେ କୁମୁଦ ନାମରେ ଠିଆ ହେବ, ଜଣେ ଶଶୀ ନାମରେ ଠିଆ ହେବ, ଯଦୁମଣି ନାମରେ ଜଣେ ଅଦୂରରେ ଠିଆ ହୋଇଥିବ ବା ବସିଥିବ । କୁମୁଦ ଶଶୀର ହାତଧରି ଖେଳିବାକୁ ଯିବାର ଅଭିନୟ କରିବା ସ୍ୱର ଉଚ୍ଚ ନ ହୋଇ ଧୀର ହେବା ଉଚିତ ।





# "ମୋ ସୁନାପୁଅଟି" ।



ମୋ ସୁନାପୁଅଟି ଭଲ,
କରେ ନାହିଁ କଲବଲ । ୧ ।

ମୋ ସୁନାପୁଅଟି ଶିଶୁ,
ସୁନାଚନ୍ଦ୍ର ପରି ଦିଶୁ । ୨ ।

ମୋ ସୁନାପୁଅଟି ସାଧୁ,
ତା ସଙ୍ଗରେ ସଙ୍ଗୀ ସାଧୁ । ୩ ।

ମୋ ସୁନାପୁଅଟି ଧୀର,
ମନ ତାହାର ଗମ୍ଭୀର । ୪ ।

ମୋ ସୁନାପୁଅଟି ବୀର,
ଚାଲୁଥାଏ ଥିର ଧୀର । ୫ ।

ମୋ ସୁନାପୁଅଟି ଗୋରା,
ସରଗ ଚନ୍ଦ୍ରରୁ ଗୋରା । ୬ ।

ମୋ ସୁନାପୁଅଟି ଶାନ୍ତ,
ଶିଶୁ କୋମଳ ନିତାନ୍ତ । ୭ ।

କ୍ଷୁଦ୍ର ବାଳିକା ଜଣେ ପୁଅଟୋଟି ସ୍ନେହ ଖେଳନା ହାତରେ ଧରି ଅବୃତ୍ତି କରିବ । ସ୍ନେହ ସୂଚକ ସ୍ୱରରେ ବୋଲିବ ।

# ସଂଖ୍ୟା—ଗଣନ ।



୧ ୨ ୩ ୪ ୫ ୬ ୭ ୮ ୯ ୦

( ୧ )

ଏକ କହୁ ଶିଶୁମାନେ,
ଠିଆ ହେବା ସାବଧାନେ ।
ଦୁଇ ବୋଲୁ ଧୀରେ ବସି,
ପୁଣି ଉଠି, ପୁଣି ବସି ।
ତିନି ଏବେ ଠିଆ ହେବା,
ଗୋଡ଼ଅଡ଼େ ଚାହିଁ ଥିବା ।

( ୨ )

ଏକ କହୁ ହୁଅ ଠିଆ,
ଦୁଇ କହୁ ବସି ଯାଅ ।
ଏକ, ଦୁଇ, ତିନି ବୋଲି,
ଆସ ଭାଇ ଧୀରେ ଚାଲି ।
ଚାରି, ପାଞ୍ଚ, ଛଅ, ସାତ,
ଆଠ, ନଅ, ଦଶ, ଗତ ।
ଉପରେ ଆକାଶ, ଚାହିଁ ଛାତି,
ତଳକୁ ଚାହିଁଲେ ଦେଖଇ ମାଟି ।

ଶିଶୁମାନେ ଏ କବିତାଟି ଆବୃତ୍ତି କରିବା ସାଙ୍ଗେ ସାଙ୍ଗେ 'ବସିବା' 'ଉଠିବା' 'ଗୋଡ଼ଅଡ଼େ ଚାହିଁବା' 'ଧୀରେ ଚାଲିବା' 'ଉପରକୁ ଚାହିଁବା' 'ମାଟିକୁ ଚାହିଁବା'ର ଅଭିନୟ କରିବେ । ଏକ ଦୁଇ ପ୍ରଭୃତି ସଂଖ୍ୟା ଜ୍ଞାପକ ଗୋଲି ବା ମଞ୍ଜି ଧରି ଯଥୋଚିତ ଅଭିନୟ କରିବେ ।



## ମିଶାଣ ।



ଏକ ସଙ୍ଗେ ଏକ ମିଶି ଦୁଇ ଦେଖ,
ତିନି, ଏକ ହେଲେ,
ତିନି ସଙ୍ଗେ ଏକ ଚାରି ହେଲା ଦେଖ.
ଚାରି ଏକ ପାଞ୍ଚ ହେଲା । ୧ ।
ପାଞ୍ଚ ଏକ ଛଅ ମନେ ରଖିଥାଅ,
ଛଅ ଏକ ମିଶି ସାତ,
ସାତ ସଙ୍ଗେ ଆଉ ଏକ ମିଶି ଯାଉ,
ଆଠ ହୋଇଅଛି ଖ୍ୟାତ । ୨ ।
ଆଠ ଆଉ ଏକ ନଅ ହେଲା ଦେଖ,
ନଅ ଏକ ଦଶ ହୋଇଲା,
ଦଶ ଆଉ ଏକ ଗଣିଣ ଏଗାର.
ମନେ ରଖ ସବୁ ପିଲା । ୩

ଶିଶୁମାନେ ହାତରେ ଗୋଲି ବା ମଞ୍ଜି ନେଇ ମିଶାଣର ପ୍ରକ୍ରିୟା କରୁଥିବେ ଏବଂ ସଙ୍ଗେ ସଙ୍ଗେ ଗୀତର ଆବୃତ୍ତି କରୁଥିବେ ।



## ଫେଡ଼ାଣ ।



ପାଞ୍ଚ ଜଣୁ ଜଣେ ଚାଲି ଗଲେ ଘର
ଚାରି ଜଣ ବାକି ରହେ,
ଚାରି ଜଣୁ ଜଣେ ପଳାଇ ଗଲେ ହେ
ବାକି ତିନି ଜଣ ରହେ । ୧ ।

ତିନି ଜଣୁ ଜଣେ ଚାଲି ଗଲେ ଘର
ଦୁଇ ଯେ ସ୍ଥିର ହୋଇଲା,
ଦୁଇରୁ ଗୋଟିଏ ଚଳେ ପଳାଇଣ
ବାକି ଯେ ଏକା ବସିଲା । ୨ ।
ଏକ ଜଣୁ ଏକ ଗଲେ ଚାଲି ଏବେ
କେହି ଅଉ ନାହିଁ ଜାଣ,
ଉପର କଥାରୁ ମନେ ହେଉ ହେଉ
ଶିଖ ଏପରି ଫେଡ଼ାଣ । ୩ ।

ପାଞ୍ଚ ଜଣ ବାଳକ ଏକାଠି ଠିଆ ହୋଇ ଆବୃତ୍ତି କରିବେ ଏବଂ ଆବୃତ୍ତି ସଙ୍ଗେ ସଙ୍ଗେ ସେଥିରୁ ଜଣ ଜଣ ହୋଇ ଚାଲି ଯାଉଥିବେ ।



## ପାଚିଲା କୋଳି ।



ପାଚି ଲାଲ କୋଳି, ପାଚିଲା କୋଳି, ଫେନ୍ତା ଫେନ୍ତା ଝୁଲୁଛି ।
କିଏ ନିଚି, କିଏ କହିଲା, କେତେ ଖୋଜି ବସୁଛି । ୧ ।
କିଏ ନେବ କୋଳି, ଗୁଡ଼, ମିଠା ପାଚିଲା କୋଳି,
ଗୀତ ବୋଲି ବୋଲି ଖାଅ କୋଳି, ମାରଣ ଡାଳ । ୨ ।

ଜଣେ ଶିଶୁ ମସ୍ତକରେ ଫଳ ଡାଲା ଧରି ଏହି ଗୀତ ଆବୃତ୍ତି କରିବ ଓ ଅନ୍ୟମାନଙ୍କୁ ବିକ୍ରୟ କରୁଥିବାର ଅଭିନୟ କରିବ .



## ଝୁଣ୍ଡୁକୁ ମୂଷି ।



"ଝୁଣ୍ଡୁକୁ ମୂଷିରେ ଝୁଙ୍କେଇ ମୁହଁ,
ଧାନ ଭରଣକ ଖାଉଥା ବସି । ଭୁଲୁ ଥା ମୁଁ ଯାଉଛୁ ଚୁଷି" । ୧ ।
ଝୁଣ୍ଡୁକୁ ମୂଷିର ଛୋଟିଆ ପାଦ । ଝୁଣ୍ଡୁକୁ ମୂଷିକୁ ମାଟି ସୁଆଦ । ୨ ।
ଝୁଣ୍ଡୁକୁ ମୂଷିର ଦେହ ଚିକ୍କଣ । ଯା ଅଂସ କରେ ଏ କଣ ସେ କଣ ।।
ଝୁଣ୍ଡୁକୁ ମୂଷିର ପାଟି ମୁହାଁ । ମୂଷିଟି ମୋହର ପିଲ୍ଲ ଜାତିଆ । ୪ ।
ଝୁଣ୍ଡୁକୁ ମୂଷିର ଦରେଟି କଥା । ପେଟ ପୂରଥିଲେ ଝୁଲଏ ମଥା । ୫ ।
ଝୁଣ୍ଡୁକୁ ମୂଷିର ଦେହ ପାଉଁଶୀ । ନ ଖାଇବା ଯାଏ ନୁହଇ ବାହୁଳି । ୬ ।
ଝୁଣ୍ଡୁକୁ ମୂଷର ଅପୂର୍ବ ଦ୍ୱେଷ । ଦୂନା ଗୃହଁ ଭିତରେ ନେ ମୂଷ ବଂଶ । ୭ ।
ଝୁଣ୍ଡୁକୁ ମୂଷିର ଖାଦ୍ୟ ଯେ ଘାସ । ମୃତ୍ତିକା ମଧ୍ୟରେ କରେ ସେ ବାସ ।

ଗୋଟିଏ ବାଳକ ମୃତ୍ତିକା ନିର୍ମିତ ଗୋଟିଏ ମୂଷାର ଖେଳନା ଗୋଟିଏ କାଠିର ନିର୍ମିତ କ୍ଷୁଦ୍ର ଗୃହଁ ଭିତରେ ଯତ୍ନରେ ରଖି ଅଛନ୍ତି ସଙ୍ଗେ ସଙ୍ଗେ ମୂଷାର ଯେଉଁ ଯେଉଁ ଅଙ୍ଗର କଥା ପଢ଼ିବ ସେହି ସେହି ଅଙ୍ଗ ସ୍ପର୍ଶ କରିବ ।



## ଷଡ଼ରସ ।



ଷଡ଼ରସ ମଧ୍ୟେ ମଧୁର ସାର,
ନିମ୍ବ ପତ୍ରର ଯେ ପିତା ଅସାର ।
ଲୁଣ ଲୁଣିଆ, ତେନ୍ତୁଳି ଅମ୍ଳ ଲା,
କଷାଫଳ ମଧ୍ୟେ ହରଡ଼ା, ଅଁଳା ;
କଟୁ ଯେ କେମନ୍ତ ତୁମେ ଜାଣିଚ,
ଅଛି ଲଗୁଆ ଏ ଲଙ୍କା ମରିଚ ।

କେତେ ଗୁଡ଼ିଏ ବାଳକ ଏହି ଷଡ଼ରସର ସମସ୍ତ ପଦାର୍ଥ ହାତରେ ଧରି ସ୍ୱାଦିବ ଓ ଅଭିନୟ ସଙ୍ଗେ ସଙ୍ଗେ ଗୀତର ଆବୃତ୍ତି କରିବେ ।



## ଦୋଳି ଖେଳ ।



ଦୋଳି ଖେଳ ଖେଳିବାକୁ ଚାଲ ଚାଲ, ଭାଇ,
ଦୋଳି ଦେଖ ଝୁଲୁଅଛି, ବସେ ମୁହିଁ ଯାଇ । ୧ ।
ବସିଛି ମୁଁ ସାବଧାନେ, ଧର ତାକୁ ଠେଲି,
ଠେଲି ନେଇ ଛାଡ଼ି ଦିଅ, ଆଣ ପୁଣି ପେଲି । ୨ ।

ଦୋଳି ଖେଳ ଖେଳିବାକୁ, ଚାଲ ଚାଲ, ଭାଇ,
ଦୋଳି ଦେଖ ଝୁଲୁଅଛି, ବସ ତହିଁ ଯାଇ । ୩ ।

ଗୋଟିଏ କ୍ଷୁଦ୍ର ଦୋଳି ଟାଙ୍ଗି ଦେଇ ତାହାପାଖରେ ଦୁଇ ଜଣ ବାଳକ ବା ବାଳିକା ଠିଆ ହୋଇ ଅଭିନୟ କରିବେ । "ଠେଲିଦେବା" ଓ "ପୁଣି ପେଲି ଆଣିବା" ଅଭିନୟ କରିବେ । ପ୍ରକୃତ ଦୋଳି ନ ଥିଲେ କେବଳ ହସ୍ତ ସଞ୍ଚାଳନଦ୍ୱାରା ଏହି କ୍ରିୟା ଦେଖାଇ ଦିଆଯାଇ ପାରେ ।



# ଦିଗ ।




ସୂର୍ଯ୍ୟ ଯେଉଁ ଆଡୁ ହୁଏ ଉଦୟ,
ସେ ଦିଗଟି ପୂର୍ବ ଜାଣ ନିଶ୍ଚୟ । ୧ ।
ଯେଉଁ ପାଖେ ସୂର୍ଯ୍ୟ ଯାଆନ୍ତି ବୁଡ଼ି,
ପଶ୍ଚିମ ଦିଗ ସେ ନ ଯିବ ଛାଡ଼ି । ୨ ।

ଠିଆ ହୋଇଲେ ପୂର୍ବକୁ ଅନାଇ
ଡାହାଣ ପାଖ ଦକ୍ଷିଣ ବୋଲାଇ । ୩ ।
ବାମ ପାଖ ଅଙ୍ଗ ଅଟେ ଉତ୍ତର,
ଶିଶୁ ଏହି ଦିଗେ ବଡ଼ାନ୍ତୁ କର । ୪ ।
ଅଗ୍ନି କୋଣ ଅଟେ ପୂର୍ବ ଦକ୍ଷିଣ,
ଉତ୍ତର ପଶ୍ଚିମ ବାୟୁକୁ ଚିହ୍ନ । ୫ ।
ନୈଋତ କୋଣଟି ପଶ୍ଚିମ ଦକ୍ଷିଣ,
ଉତ୍ତର ପୂର୍ବରେ ଐଶାନ୍ୟ ଜାଣ । ୬ ।
ଚାରୋଟି ଦିଗ ଯେ, କୋଣ ଚାରୋଟି,
ଏହିପରି ହେଲା ଦିଗ ଅଠୋଟି । ୭ ।
ଅଧ ତଳ ଅଟେ, ଊର୍ଦ୍ଧ୍ୱ ଉପରେ,
ଦଶ ଦିଗ ହେଲା ଏହି ରୂପରେ । ୮

ଛାତ୍ରମାନେ ଏହି ଗୀତର ଅବୃତ୍ତି ସଙ୍ଗେ ସଙ୍ଗେ ଯେଉଁ ଦଗର କଥା ଯେତେବେଳେ ପଢ଼ିବ, ସେତେବେଳେ ସେହି ଦଗ ଅଙ୍ଗୁଳି ତୋଳି ନିୟମରେ ଘୂରି ଯାଇ ହସ୍ତ ବଢ଼ାଇ ଦେଖାଇବେ । ଅଧ ଉର୍ଦ୍ଧ୍ୱ ବେଳେ ଛାତି ଉଦାମ୍ବର ଉପରକୁ ଉଠିବ ଓ ତଳେ ପଡ଼ିବ । ଦଶଦଗ ବେଳେ କ୍ଷିପ୍ରତା ସହକାରେ ସବୁ ଅଙ୍ଗକୁ ହସ୍ତ ସଞ୍ଚାଳନ କରିବ ।

ପ୍ରଥମବର୍ଷୀୟ ଶିଶୁଶ୍ରେଣୀ ସମାପ୍ତ ।



# ଦ୍ୱିତୀୟବର୍ଷୀୟ ଶିଶୁଶ୍ରେଣୀ ।

## ଉଠା ବସା ।



ଏକ ଏକ ଦୁଇ ଚଢ଼ ଧାଡ଼ି ହୋଇ । ୧ ।
ଦୁଇ ଦୁଇ ଚାରି ଲମ୍ଫ କୁଦା ମାରି । ୨ ।
ତିନି ତିନି ଛଅ କହ ବସି ଯାଅ । ୩ ।
ତିନି ଚାରି ସାତ ଯୋଡ଼ି ଦୁଇ ହାତ । ୪ ।
ଚାରି ଚାରି ଅଠ କହି ପୁଣି ଉଠ । ୫ ।
ଚାରି ପାଞ୍ଚ ନଅ ଉଠି ଚାଲି ଯାଅ । ୬ ।
ପାଞ୍ଚ ପାଞ୍ଚ ଦଶ ପୁଣି ଫେରି ଆସ । ୭ ।

ଏହିପରି ଅବସ୍ଥାନ ଅନୁସାରେ ଯେତିକି ସଂଖ୍ୟକ ଛାତ୍ର ଥିବ ମିଶି ଆବୃତ୍ତି କରିବେ ।



## ଶରୀର ।

ମୋ ଶିର ଉପରେ ଅଛି, ଦେଖ, କଳା କେଶ,
କାନ୍ଧିଠେ ଦାନ୍ତ ମାରୁଛି, ଏ ମୋ ଗଣ୍ଡ ଦେଶ । ୧ ।

ଭ୍ରୂ ଯୁଗଳ ଶୋଭେ, ଦେଖ ମୋ ଦୁଇ ନୟନ;
ନାସିକା ଏହାକୁ କହେ, ଏ ଦୁଇ ଶ୍ରବଣ । ୨ ।
ଚିବୁକ ଦେଖ ହେ, ଏହୁ ମୋ ମୁଖମଣ୍ଡଳ,
ଉପରେ ରହନ୍ତୁ ଓଷ୍ଠ, ଅଧର ଯେ ତଳ । ୩ ।
ହାତ ମାରେ ମୁହିଁ କାନ୍ଧେ, ଦେଖ ଏ ମୋ ଗାଲ,
ଏହା ଅଟେ ମୋର କଣ୍ଠ, ଏହୁ ବକ୍ଷସ୍ଥଳ । ୪ ।
ଦୁଇ ବାହୁ ଏହୁ ମୋର, ଏହୁ ପୁଣି ସ୍କନ୍ଧ,
କହୁଣୀ ପ୍ରକୋଷ୍ଠ ଦେଖ, ଏହୁ ମଣିବନ୍ଧ । ୫ ।
ଅଙ୍ଗୁଷ୍ଠ, ତର୍ଜନୀ, ମଧ୍ୟା, ଅନାମିକା ପୁଣି,
କନିଷ୍ଠା ଅଙ୍ଗୁଳି ସର୍ବେ, ଦେଖ, ଗଣି, ଗଣି । ୬ ।
ଉଦର ଏହାକୁ କହ, ଏହୁ ପୃଷ୍ଠଦେଶ,
ମେରୁଦଣ୍ଡେ ହାତ ଦେଇ, କଲି ସର୍ବ ଶେଷ । ୭ ।
ଗୋଡ଼ଟି ଦକ୍ଷିଣ ଦେଖ, ଏ ଗୋଡ଼ଟି ବାମ,
କଟି, ନାଭି, ଏହୁ ଦେଖ, ଉରୁ ଏହା ନାମ । ୮ ।
ଏ ମୋ ଗୋଇଠି, ପାପୁଲି, ଅଙ୍ଗୁଳି ସକଳ,
ରକ୍ତ, ମାଂସ, ଅସ୍ଥି ଦେଖ, ବିଭୁଙ୍କ କୌଶଳ । ୯ ।
ସେ ବିଭୁଙ୍କ ପାଦପଦ୍ମେ, ନମସ୍କାର କର,
ଭକ୍ତି ଭରେ ବିଭୁ ନାମ, ଗାଅ ନିରନ୍ତର । ୧୦ ।

ଏହା ଗୋଟିଏ ସୁନ୍ଦର ଅଭିନୟ । ଛାତ୍ରମାନେ ଧାଡ଼ି ହୋଇ ଠିଆ ହୋଇ ଶରୀରର ପ୍ରତ୍ୟେକ ଅଂଶ ହସ୍ତ ଦ୍ୱାରା ସ୍ପର୍ଶ କରିବା ସଙ୍ଗେ ସଙ୍ଗେ ଆବୃତ୍ତି କରୁଥିବେ । ଶେଷରେ ବିଭୁଙ୍କ ସ୍ତୁତିମୂଳକ ପାଦଟି ଆବୃତ୍ତି କଲାବେଳେ ହାତ ଯୋଡ଼ି ଅବନତମସ୍ତକ ହେବେ ।



## ଇନ୍ଦ୍ରିୟ ।

ଗୋପାଳ—ଅକ୍ଷି ଦୁଇ ଅଛୁ ଦେଖିବାପାଇଁ,
ଦର୍ଶନ ଇନ୍ଦ୍ରିୟ ତେଣୁ ବୋଲାଇ ।
ହରି—ମୁଣ୍ଡ ଦୁଇ ପାଖେ ଦୁଇଟି କାନ,
ତହିଁରେ ହୁଅଇ ଶ୍ରବଣ ଜ୍ଞାନ ।
ରାମ—ନାସିକା ସୁଗନ୍ଧ ଦୁର୍ଗନ୍ଧ ବାରେ,
ତାହା ଯୋଗେ ମୁହିଁ ନିଶ୍ୱାସ ମାରେ ।
ଶ୍ୟାମ—ଘ୍ରାଣେନ୍ଦ୍ରିୟ ନାମ ବୋଲାଏ ନାକ,
ଜିଭ ଅଛି ମୁଖ ଭିତର ପାଖ ।
ଚନ୍ଦ୍ର—ରସ ସ୍ୱାଦ ଗୁଣ ଜାଣି ପାରଇ,
ରସନେନ୍ଦ୍ରିୟ ଯେ ତାହାକୁ କହି ।
ଦାମ—ଚର୍ମ ବାୟୁ ପାରେ ଉଷ୍ଣ ଶୀତଳ,
ତେଣୁ ସ୍ପର୍ଶେନ୍ଦ୍ରିୟ ନାମ କେବଳ ।
ଗୋକୁଳ—ପଞ୍ଚେନ୍ଦ୍ରିୟ ଯାକ ଏକା ଥରକେ,
ଚିହ୍ନ ଦାତ ମାର ସବ ବାଳକେ ।

୫ଜଣ ବାଳକ ଯଥାକ୍ରମ ପ୍ରତ୍ୟେକ ଇନ୍ଦ୍ରିୟକୁ ସ୍ପର୍ଶ କରି ଆବୃତ୍ତି କରିବା ସଙ୍ଗେ ସଙ୍ଗେ ଇନ୍ଦ୍ରିୟର କାର୍ଯ୍ୟଗୁଡ଼ିକ ଦେଖାଇବେ । ଯଥା, ଦେଖିବା, ଶୁଣିବା, ଶୁଙ୍ଘିବା, ସ୍ୱାଦବାରିବା, ଉଷ୍ଣତା ଓ ଶୈତ୍ୟ ବାରିବା ଇତ୍ୟାଦି । ଶେଷରେ ପଞ୍ଚେନ୍ଦ୍ରିୟଯାକ ସ୍ପର୍ଶ କରିବେ ।



## ଜାମୁ ।

ଜାମୁଗଛ, ଭଲି ଗଛ, କଳା ଫଳ ଫଳେ ।
ଗୋଟି ଗୋଟି ଝୁଲୁଥାଏ, କେତେ ପଡ଼େ ତଳେ । ୧ ।

ବାଳକାମାନେ ଏ ଗୀତ ଆବୃତ୍ତି କରିବେ । "କଅଁଶିରେ ଖୋଇବା" "ଠୁଲ୍ଲୁ ଠୁଲ୍ଲୁ ହୋଇ ଚାଲିବା", "ମେଁ ମେଁ ଡାକିବା" "ଛୁଅ ଯୋ, ଯୋ, ହେବା" ଏ ସବୁର ଅଭିନୟ ହେବ । ଏଦ୍ୱାରା ପ୍ରବୃତ୍ତି ସ୍ନେହସୂଚକ, ଧୀର ଓ ସୁମିଷ୍ଟ ହେବ ।





## ବିରାଡ଼ି ।



ମାଉଁ, ମାଉଁ ହୋଇ ବୋବାଏ ପୁଷି,
ଦୁଧ ଭାତ ଦେଲେ ହୁଏ ଖୁସି । ୧ ।
ଶୁଏ ଚୁଲ୍ଲି ମୁଣ୍ଡେ ଉଷୁମ ଥାଏନି,
ଅନ୍ଧାରେ ବିରାଡ଼ି ବାଘ ସମାନେ ।
ମୂଷା ଛେଟିଛିଟି, ପକ୍ଷୀ ଶିକାର,
ମାଛ, ମାଂସ, ଦୁଧେ ଲାଳଧା ଭାର ।
ଭାରି ନରମ ଗୋଡ଼ ଅଟେ ନଳଥା,
ପାଦ ତଳପାଟି ଯେ କଅଁଳଥା ।
ଅଗ ଗୋଡ଼େ ପାଞ୍ଚ, ପଛରେ ଚାରି,
ଲୁଚିଲେ ନଖ ପଡ଼େ ନାହାରି । ୨ ।

ଶୁଣି ହେଲେ ପୁଣି ଲାଙ୍ଗୁଳ ପିଟେ,
ଖାଟେ ନଖ ଦେଇ ଦେହକୁ କଷେ । ୬ ।
ଅଖି ଜଳ ଜଳ, ଛଳ ବାହୁଅ,
ମା’ ଠାରୁ ଶିଖାର ଶିଶନ୍ତୁ ବୁଅ । ୭ ।
ଭୋକ ଲାଗିଲେ ସେ ପାଦେ ଲୋଟଇ,
ଅହୁଁ ସିଲେ ଘୁଡୁ, ଘୁଡୁ କୁଅଇ । ୮ ।
ବିରାଡ଼ିକୁ ସ୍ନେହ କର ବାଳକ,
ହୁଅ ନିରନ୍ତର ତାର ପାଳକ । ୯ ।

ଜଣେ ବାଳକ କୋଡ଼ରେ ପୋଷା ବିରାଡ଼ିଟିଏ ଧରି ଓ ବିରାଡ଼ିର ବିଶେଷ ବିଶେଷ ଅଙ୍ଗରେ ହାତ ମାରି ଆବୃତ୍ତି ସଙ୍ଗେ ସଙ୍ଗେ ଅଭିନୟ କରିବ । "ଘୁଡୁ" "ଘୁଡୁ" ଶବ୍ଦଟି ମଧ୍ୟ ଅନୁକରଣ କରିବେ ।



## ଆଠ ।



ପାଚିଲା ଅମ୍ବ, ପାଚିଲା ଅମ୍ବ,
କିଏ କିଣିବ ପାଚିଲା ଅମ୍ବ,
ପାଚିଲା ଅମ୍ବ, ପାଚିଲା ଅମ୍ବ, କିଏ ନେବ ଆସ, ପାଚିଲା ଅମ୍ବ ।

କେତେଗୁଡ଼ିଏ ଶିଶୁ ଠିଆ ହୋଇ ଥିବେ । ଜଣେ ବାଳକ ଅମ୍ବଗୁଡ଼ିଏ ଧରି ଏହି ଗୀତଟି ବୋଲି ବୋଲି ସେମାନଙ୍କ ସମ୍ମୁଖରେ ପହଞ୍ଚିବ । ସେମାନେ କିଛି କିଛି କିଣିବାର ଅଭିନୟ କରିବେ ।



କଟକ ଦତ୍ତପ୍ରେସରେ ଶ୍ରୀ ହରିମୋହନ ଦତ୍ତଙ୍କ ଦ୍ୱାରା
ମେସିନ୍‌ଯନ୍ତ୍ରେ ମୁଦ୍ରିତ ।

